ISSN: 2456-9194, Vol. IV, Issue. II, Sept 2020

# ପ୍ରତ୍ୟୟ

(Journal of Odia Language, Culture and Science)

Journal Homepage: http://cphfs.in/research.php

# ପଦ୍ମଜ ପାଳଙ୍କ ଉପନ୍ୟାସରେ ପ୍ରତିଫଳିତ ସାମାଜିକ ବାସ୍ତବତା

**ଅସିତ ପ୍ରଧାନ**

ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ବିଶ୍ୱବିଦ୍ୟାଳୟ

Email: pradhanasit.111@gmail.com

*ସଂକ୍ଷିପ୍ତସାର: ମଣିଷର ସାମାଜିକ କ୍ରିୟାକଳାପ ଚିତ୍ରକୁ ଏକ ନିର୍ଦ୍ଦିଷ୍ଟ ଆଦର୍ଶରେ ପ୍ରକଟନ କରିବା ସାମାଜିକ ବାସ୍ତବବାଦର ଲକ୍ଷ୍ୟ । ବାସ୍ତବବାଦ ଆନ୍ଦୋଳନ ମାକ୍ସିମ ଗର୍କିଙ୍କ ଦ୍ୱାରା ପ୍ରବର୍ତ୍ତିତ । ଔପନ୍ୟାସିକ ପାଳଙ୍କ ଉପନ୍ୟାସରେ ରାଜନୀତିର ନକାରାତ୍ମକତା ବିରୁଦ୍ଧରେ ସ୍ୱର ତୀବ୍ର । 'ଓଯେ ପୁଅ ମା', 'ପଣ୍ଡୁରଙ୍ଗୀ ନିବାସ', 'ଆମ ସମୟର ଦୁଃଖ', "ଗାନ୍ଧି ଛକରୁ ଟିକିଏ ଆଗକୁ' ଆଦି ଉପନ୍ୟାସରେ ବାସ୍ତବିକ ସାମ୍ପ୍ରତିକ ସମାଜ ଯେତିକି ଆଧୁନିକତାର ବଶବର୍ତ୍ତୀ ହେଲେ ମଧ୍ୟ ଜାତିପ୍ରଥାକୁ ଛାଡ଼ିପାରୁନାହିଁ । ଅତଏବ ପଦ୍ମଜ ପାଳଙ୍କ ଦୃଷ୍ଟିରେ ଏ କ୍ଷେତ୍ରରୁ ରକ୍ଷା ପାଇବାଁ ପାଇଁ ବ୍ୟବସ୍ଥା ଓ ଧାରାକୁ ଭାଙ୍ଗି ଦେବାକୁ ପଡ଼ିବ ।*

*ମୂଳ ଶବ୍ଦ: ପଦ୍ମଜ ପାଳ, ଉପନ୍ୟାସ, ସାମାଜିକ ବାସ୍ତବତା, ଓଡ଼ିଆ ସାହିତ୍ୟ, ଦୁର୍ଗ ପତନର ବେଳ, ପାପ ପରି ନିଜର*

ସାହିତ୍ୟ ଏବଂ ସମାଜ ପରସ୍ପରର ପରିପୂରକ । ସାହିତ୍ୟ ବାସ୍ତବ ହେଉ ବା କଳ୍ପନା, ସମାଜର କଥା ହିଁ କହିଥାଏ । ସମାଜକୁ ବାଦ୍ ଦେଇ ସାହିତ୍ୟ ସ୍ୱୟଂସମ୍ପୂର୍ଣ୍ଣ ହୋଇପାରେ ନାହିଁ । ତେଣୁ ଜଣେ ସାହିତ୍ୟ ସ୍ରଷ୍ଟା ତା' ସୃଷ୍ଟି ସର୍ଜନା ସମୟରେ ସମାଜ ପ୍ରତି ଏବଂ ସାମାଜିକ ଯୁକ୍ତିଶୀଳତା ପ୍ରତି ସଚେତନ ଥାଏ । ଆଉ ଔପନ୍ୟାସିକ ପଦ୍ମଜ ପାଳ ତ ଏ ଦୃଷ୍ଟିରୁ ଅତି ସଚେତନ । ତାଙ୍କ ଉପନ୍ୟାସର ଚରିତ୍ରମାନେ ସିଧାସଳଖ ସମାଜରୁ ଆସିଥାନ୍ତି ଏବଂ ନିଛକ ମଣିଷର କଥା ହିଁ କହିଥାନ୍ତି । ସମାଜରେ ସାକାରାତ୍ମକତା ନାକାରାତ୍ମକତା ଉଭୟ ଥାଏ । ସାକାରାତ୍ମକ ତ ଠିକ୍ ଅଛି, ମାତ୍ର ବିଭ୍ରାନ୍ତି ସୃଷ୍ଟି କରୁଥିବା ନାକାରାତ୍ମକକୁ ଚିହ୍ନାଇବା ଜଣେ ସଚେତନ ସ୍ରଷ୍ଟାର କର୍ତ୍ତବ୍ୟ । ଏହି କର୍ତ୍ତବ୍ୟବୋଧକୁ ନିଜ ଉପରକୁ ନେଇଛନ୍ତି ଔପନ୍ୟାସିକ ପାଳ । ସମାଜର ବାସ୍ତବ ଅବଗୁଣାବଳୀକୁ ତାଙ୍କ ଉପନ୍ୟାସର କାରକ ଭାବେ ଗ୍ରହଣ କରିଛନ୍ତି ସେ । ଦୁର୍ନୀତି, ଦାୟିତ୍ୱହୀନତା, ପାରିତୋଷିକତା, ପାରିବାରିକ ବୁଝାମଣାହୀନତା, କଳୁଷିତ ରାଜନୀତି, ସ୍ୱାର୍ଥପରତା, ଭଣ୍ଡାମି, ଜାତିବାଦ ପ୍ରତି ରୋଚକ ଢଙ୍ଗରେ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ଔପନ୍ୟାସିକ ପାଳ । ତା'ସହ ମାନସ୍ତାତ୍ତ୍ୱିକ ବାସ୍ତବତା ମଧ୍ୟ ତାଙ୍କ ଉପନ୍ୟାସରେ ଦେଖିବାକୁ ମିଳେ । ଏସବୁକୁ କିପରି କେମିତି ଓ କାହିଁକି ସେ ତାଙ୍କ ଉପନ୍ୟାସରେ ବ୍ୟବହାର କରିଛନ୍ତି, ତାକୁ ପାଠକମାନଙ୍କୁ ଦେଖେଇବା ଏହି ଆଲେଖର ଉଦ୍ଦେଶ୍ୟ । ପାଠକେ ଗ୍ରହଣ କଲେ ଶ୍ରମ ସାର୍ଥକ ହେବ ।

ମଣିଷ ମାତ୍ରକେ ସାମାଜିକ ପ୍ରାଣୀ । ସମାଜ ସହିତ ତା'ର ସମ୍ପର୍କ ଅବିଚ୍ଛିନ୍ନ । ତେଣୁ ସାହିତ୍ୟ ସ୍ରଷ୍ଟା ମଧ୍ୟ ସମାଜର ଅନ୍ୟ ମଣିଷମାନଙ୍କ ପରି ଜଣେ । ତା'ର ସାମାଜିକ ପରିବେଷ୍ଟନୀ ଭିତରେ କ୍ରିୟାକଳାପ କାର୍ଯ୍ୟକାରୀ ହୁଏ । ସର୍ବୋପରି, "ମଣିଷ କହିଲେ ସବୁବେଳେ ସାମାଜିକ ମଣିଷକୁ ହିଁ ବୁଝାଏ । ବାହ୍ୟ ବାସ୍ତବତା ସହିତ ସଂଗ୍ରାମ, ଜୀବନଯାତ୍ରା ପାଇଁ ପାଥେୟ ଆହରଣ ସେ ଏକା ଏକା କରିପାରେ ନାହିଁ । ଏଥିପାଇଁ ସେ ସମାଜର ଅନ୍ୟାମାନଙ୍କ ସହିତ ସଂଶ୍ଳିଷ୍ଟ ହେବାକୁ ବାଧ୍ୟ ଏବଂ ଏହି ପ୍ରକ୍ରିୟା ଭିତରେ ସୃଷ୍ଟି ହୁଏ ତା'ର ସାମାଜିକ ଚେତନା ।"୧

ସାହିତ୍ୟ ହେଉଛି ଦର୍ପଣ । ସମାଜକୁ ନେଇ ମଣିଷ ଜୀବନ ବଞ୍ଚୁଥିବା ହେତୁ ସାହିତ୍ୟରେ ସାମାଜିକ ଜୀବନର ଅଭିବ୍ୟକ୍ତି ଘଟିବା ସୁନିଶ୍ଚିତ । ପୁଣି ଯେଉଁ ସାହିତ୍ୟ ଯେତିକି ବାସ୍ତବତାକୁ କେନ୍ଦ୍ର କରି ରଚିତ ସେ ସାହିତ୍ୟ ସେତିକି ସମୃଦ୍ଧ। "ମଣିଷର ଜୀବନ ବାସ୍ତବତା ସହିତ ଅନେକ ଜଟିଳ ସମ୍ପର୍କର ସୂତ୍ରରେ ଗୁନ୍ଥା ହୋଇଥାଏ । ସାହିତ୍ୟ ତେଣୁ ବାସ୍ତବତା ସହିତ ସମ୍ପର୍କୀଭୂତ ହେବାକୁ ବାଧ୍ୟ । ଏହି ସମ୍ପର୍କ ଭିତରେ ସାହିତ୍ୟ, ମଣିଷ ଓ ତାକୁ ଘେରି ରହିଥିବା ବାସ୍ତବତା ଭିତରେ ଏକ ସେତୁର ଭୂମିକା ଗ୍ରହଣ କରେ ଏବଂ ନିଜର ସଂଜ୍ଞା ଓ ଆଭିମୁଖ୍ୟକୁ ପ୍ରତିପାଦିତ କରେ ।"୨ ଏ ଦୃଷ୍ଟିରୁ ସାମାଜିକ ପରିବେଷ୍ଟନୀ ଭିତରେ ବଢ଼ିଥିବା ଚରିତ୍ରଗୁଡ଼ିକୁ ଔପନ୍ୟାସିକ ପଦ୍ମଜପାଳ ଉପନ୍ୟାସରେ ପ୍ରକଟନ ବେଳେ ବାସ୍ତବତାଠାରୁ ଦୂରେଇ ନ

ଯାଇ ବରଂ ଆହୁରି ନିବିଡ଼ ଭାବେ ଆଲୋଚନା କରୁଥିବାରୁ ପ୍ରାଣବନ୍ତ ଲାଗେ ।

ସାମାଜିକ ବାସ୍ତବତା ଓ ବାସ୍ତବବାଦ ଭିନ୍ନ କଥା ହେଲେ ହେଁ ବାସ୍ତବବାଦ ସ୍ୱତଃ ଆଲୋଚନାର ପରିସରକୁ ଚାଲିଆସେ । ଏହି ବାସ୍ତବବାଦ ଆନ୍ଦୋଳନ ମାକ୍ସିମ ଗର୍କିଙ୍କ ଦ୍ୱାରା ପ୍ରବର୍ତ୍ତିତ । ଏହା ସାହିତ୍ୟକୁ ବହୁ ପରିମାଣରେ ପ୍ରଭାବିତ କରିଛି । କିନ୍ତୁ ପାଶ୍ଚାତ୍ୟ ସାହିତ୍ୟରେ ବାସ୍ତବବାଦର ବୈଷୟିକ ସଂଜ୍ଞାକୁ ଦେଖିଲେ ଓଡ଼ିଆରେ ଲିଖିତ କୌଣସି ଉପନ୍ୟାସ ବାସ୍ତବବାଦୀ ନୁହେଁ । ଯେମିତି ଫକୀର ମୋହନଙ୍କ "ଛମାଣ ଆଠଗୁଣ୍ଠ"ରେ ଚରିତ୍ରମାନେ କର୍ମଫଳ ଭୋଗ କରିଛନ୍ତି । ଶାନ୍ତନୁ କୁମାର ଆଚାର୍ଯ୍ୟଙ୍କ "ଶକୁନ୍ତଳା" ନକ୍ସଲବାଦୀ ଆନ୍ଦୋଳନ ଉପରେ ପର୍ଯ୍ୟବସିତ ହେଲେ ହେଁ ଏଥିରେ ବୈଷ୍ଣବ ସଂସ୍କୃତିର ମହାତ୍ମ୍ୟ ପ୍ରଦର୍ଶିତ । ତେଣୁ ପାଶ୍ଚାତ୍ୟ ଓ ଓଡ଼ିଆ ବାସ୍ତବବାଦରେ ଆଂଶିକ ସାମ୍ୟ ପରିଲକ୍ଷିତ । ଏ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟକୁ ସୁହାଇଲା ଭଳି ଏହାର ଆଲୋଚନା କରିବାକୁ ଯାଇ ନୃସିଂହ ଚରଣ ପଣ୍ଡା ଏହାର ସଂଜ୍ଞା ରୂପେ ଦର୍ଶାଇଛନ୍ତି - "ଯେଉଁ ସାହିତ୍ୟ ସମାଜର ବାସ୍ତବ ଚିତ୍ରକୁ ପ୍ରତିଫଳିତ କରେ, ଜନଜୀବନକୁ ଚିତ୍ରଣ କରେ, ଜନତାର ଭାଷା ପ୍ରୟୋଗ କରେ, ସାମାଜିକ ପ୍ରାସଙ୍ଗିକତା ରକ୍ଷା କରେ, ସାମାଜିକ ସମସ୍ୟାର ସମାଧାନର ସୂତ୍ର ଖୋଜେ ଏବଂ ସମାଜ ପାଇଁ ପ୍ରାୟୋଗିକ ୟୁଟୋପିଆ ଗଢ଼େ, ତା' ବାସ୍ତବବାଦୀ ସାହିତ୍ୟ ।"୩ ସେ ଯାହାବି ହେଉ ମଣିଷର ସାମାଜିକ କ୍ରିୟାକଳାପ ଚିତ୍ରକୁ ଏକ ନିର୍ଦ୍ଦିଷ୍ଟ ଆଦର୍ଶରେ ପ୍ରକଟନ କରିବା ସାମାଜିକ ବାସ୍ତବବାଦର ଲକ୍ଷ୍ୟ । କିନ୍ତୁ ବିନା ଆଦର୍ଶରେ ସାମାଜିକ କ୍ରିୟାକଳାପକୁ ଅବିକଳ ଉପସ୍ଥାପନା କରିବା ସାମାଜିକ ବାସ୍ତବତାର ଉଦ୍ଦେଶ୍ୟ । ଉକ୍ତ ବିଷୟକୁ ଆଧାର କରି ଔପନ୍ୟାସିକ ପାଳଙ୍କ ଉପନ୍ୟାସରେ ସାମାଜିକ ଚିତ୍ର ପ୍ରକଟନ କରାଯାଇଛି ଏବଂ ତାହା କେମିତି ପରିମାଣରେ ବାସ୍ତବତାକୁ ବହନ କରି ଉପନ୍ୟାସକୁ ରସସିକ୍ତ କରିପାରିଛି ତାହା ଦର୍ଶାଇବା ଏଠି ଲକ୍ଷ୍ୟ ହୋଇଉଠିଛି ।

ସମାଜର ପରିବାରର ଭୂମିକା ଗୁରୁତ୍ୱପୂର୍ଣ୍ଣ । ପରିବାର ସାଧାରଣତଃ କେତୋଟି ବ୍ୟକ୍ତିର ସମାହାରକୁ ନେଇ ଗଠିତ । ସେହିପରି ସାମୂହିକ ପରିବାରକୁ ନେଇ ସମାଜ ଗଠିତ । ଗୋଟିଏ ପରିବାରରେ ପ୍ରତ୍ୟେକ ବ୍ୟକ୍ତିର ସ୍ୱତନ୍ତ୍ର ଭୂମିକା ରହିଛି । ସିଏ ଯେତିକି ସୁସ୍ଥ ଜୀବନ ବଞ୍ଚେ, ସେତିକି ବଳିଷ୍ଠ ହୁଏ ପରିବାର ଓ ସମାଜ । ପରସ୍ପର ମଧ୍ୟରେ ସ୍ନେହ, ମମତା, କର୍ତ୍ତବ୍ୟବୋଧ ଓ ଆତ୍ମୋତ୍ସର୍ଗରେ ପରିବାର କେବଳ ବିକାଶ ଲାଭ କରେ ନାହିଁ, ସମଗ୍ର ସମାଜ ମଧ୍ୟ ବିକାଶ ଲାଭ କରେ, କିନ୍ତୁ ସମ୍ପ୍ରତି ପରିବାର ମଧ୍ୟରେ ନୈତିକତାର ଆଧୋପତନ ଘଟିଛି । ପରିଲକ୍ଷିତ ହେଉଛି ଯୌଥ ପରିବାରର ଅଭାବବୋଧ । ବ୍ୟକ୍ତିକ ସମ୍ପର୍କରେ ବାନ୍ଧି ହୋଇ ରହିଥିବାରୁ ପରିବାରର ଗୁରୁତ୍ୱ ହ୍ରାସ ପାଇଛି । ପରସ୍ପର ମଧ୍ୟରେ କଳହ, ବାହ୍ୟ ଲୋକଙ୍କ କୁଟ ଚକ୍ରାନ୍ତ, କଳୁଷିତ ରାଜନୀତି ଆଦିର ପ୍ରଭାବରେ ଜଣେ ଆଉ ଜଣଙ୍କର ଶତ୍ରୁ ସାଜିଛି । ସାମ୍ପ୍ରତିକ ପରିବାରର କଥା ପ୍ରକଟନ ବେଳେ ଏଭଳି ଧ୍ୱସ୍ତବିଧ୍ୱସ୍ତ ପରିବାରର ଚିତ୍ର ଲେଖକ ଚିତ୍ତରେ ସ୍ୱତଃ ଉଦ୍ଭାସିତ ହେଉଛି । ଏ ପରିପ୍ରେକ୍ଷୀରେ ଔପନ୍ୟାସିକ ପାଳଙ୍କ ଉପନ୍ୟାସରେ ବିଭିନ୍ନ ପରିବେଶ ଓ ପରିସ୍ଥିତି ଭିନ୍ନ ଭିନ୍ନ ଭାବେ ଦେଖାଦେଇଛି । 'ଆମ ସମୟର ଦୁଃଖ'ରେ ଗୋଟିଏ ପରିବାରରେ ବାପର ଦୁର୍ନୀତିମୂଳକ କାର୍ଯ୍ୟ ପୁଅ ଉପରେ ପ୍ରଭାବ ପକାଇ ପାରିବାରିକ ସମ୍ପର୍କରେ ବିଶ୍ୱାସ ତୁଟାଇଛି । ଏଠି ରାମର ବାପା ନିରଞ୍ଜନ ମହାନ୍ତି ଜଣେ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର । ସମାଜର ଜଣେ ଉଚ୍ଚପଦସ୍ଥ ବ୍ୟକ୍ତି । କିନ୍ତୁ ଦୁର୍ନୀତି ଯେମିତି ତାଙ୍କର ପ୍ରତି ରକ୍ତକଣାରେ ଲାଖି ରହିଛି । କଳା ଟଙ୍କାରେ ପରିବାର ଚଳେ । ଏଭଳି ଏକ ପାରିବାରିକ ପରିବେଶ ଭିତରେ ସିଏ ଲାଳିତପାଳିତ । ପ୍ରେମହୀନ ଦେହକ୍ଷୁଧାର ପାଗଳାମୀ ଭିତରେ ତାର ଜନ୍ମ । ସେହି ରାମ ଆଜି ବ୍ଲୁ ଫିଲ୍ମ ଦେଖାଇ ରୋଜଗାର କରୁଛି । ସେଥିପାଇଁ ନିରଞ୍ଜନ ମହାନ୍ତି ଦୁର୍ନାମରୁ ରକ୍ଷା ପାଇବା ଲାଗି ବ୍ୟସ୍ତ କିନ୍ତୁ ସ୍ନେହ, ପ୍ରେମ ବା ଦାୟିତ୍ୱବୋଧ ଯୋଗୁଁ ନୁହେଁ । ସେଥିପାଇଁ ରାମ କୁହେ - "ଭଲ କରି ଦେଖ । ମୋ ଦେହରେ ବହୁଥିବା ପ୍ରତିଟି ରକ୍ତବିନ୍ଦୁ କହେ ଦୁର୍ନୀତିର କଥା । ମୋ ଦେହର ପ୍ରତିଟି ମାଂସପେଶୀର ଅଣୁପରମାଣୁ ଗଠିତ ହୋଇଛି କଳାଟଙ୍କାରେ, ପରିପୁଷ୍ଟ ହୋଇଛି ଆବର୍ଜନାରେ । ଇଏ ମୋର ପରିବେଶ । ମୁଁ ଯେଉଁ ଶିକ୍ଷା ପାଇଛି, ସେଥିପାଇଁ ବ୍ୟୟ ହୋଇଥିବା ସବୁ ଟଙ୍କା ଲାଞ୍ଚ ଟଙ୍କା । ମୋତେ ପିଲାଟି ଦିନରୁ ଲାଳନପାଳନ କରୁଥିବା ଲୋକମାନେ ସରକାରୀ ଚାକିରିଆ । ଦିନ ମଜୁରିଆ । ଭୟ ଆଉ ପ୍ରଲୋଭନରେ, ଯେଉଁମାନେ ମତେ ଛଳନାରେ ସ୍ନେହ କରିଛନ୍ତି, କାଖେଇଛନ୍ତି, କୁଣ୍ଢେଇଛନ୍ତି, ଏସବୁ ଅବସ୍ଥାରେ ମୁଁ ଆଉ କ'ଣ ହୋଇପାରିଥା'ନ୍ତି ଶାମ !"୪ ବାସ୍ତବିକ ପାରିବାରିକ ପରିସ୍ଥିତି ଉପରେ ନିର୍ଭର କରେ ପିଲାର ଭବିଷ୍ୟତ । ଏଭଳି ପରିବେଶରେ ତା'ର ଅବସ୍ଥା ଅସାମାଜିକ ଅପରାଧୀଟିଏ ଭଳି ହେବା ସୁନିଶ୍ଚିତ । ସେହିପରି ପରିବାରରେ ସବୁବେଳେ କଳିକଜିଆ ଲାଗି ରହିଥିଲା । ଭାଉଜ ସାଙ୍ଗରେ ତା'ର ପାଟିତୁଣ୍ଡ ଦୀର୍ଘ ଦିନର ସମ୍ପର୍କର ବନ୍ଧନକୁ ଫିଟାଇ ଦେଇଛି । ଭାଉଜ ମଧ୍ୟ ସ୍ୱାମୀ ବିଧୁକୁ ଏଥିପାଇଁ କହୁଛନ୍ତି, 'ଏ ଘରେ ମଲେ ବି କାହାରି ଆହା କରିବାକୁ ନାହିଁ ।' ବିଧୁ ମଧ୍ୟ ରାଗରେ ଓ ବିରକ୍ତରେ ଜର୍ଜରିତ ହୋଇଉଠୁଥିଲା । ଗୋଟିଏ ଅଶାନ୍ତ ବାତାବରଣ ଛାଇଯାଇଥିଲା ଘର ଭିତରେ । ପୂର୍ବରୁ ଭାଇ ଭାଇ ମଧ୍ୟରେ ଯେଉଁ ସମ୍ପର୍କ ନିବିଡ଼ ଥିଲା ତାହା ଛିନ୍ନ ହୋଇଗଲା। ଏଭଳି 'ମାମୁଁ ଘର ଚଉଁରୀ'ରେ ମଧ୍ୟ ପୂର୍ବର ଯେଉଁ ସୁନ୍ଦର ପରିବାର ଥିଲା ତାହା ଏକ କଳିଝଗଡ଼ାର ପୀଠ ପାଲଟିଛି । ରାଜୁ ବହୁ ବର୍ଷ ପରେ ମାମୁଁ ଘରକୁ ଯାଇ ଦେଖିଛି ମାମୁଁ ଘର ବଦଳିଯିବାର ଅବସ୍ଥା । ସବୁ ଭାଇ ଅଲଗା ଅଲଗା ହୋଇଯାଇଛନ୍ତି । ମାଇଁମାନେ କେହି କାହାରି ଦ୍ୱାର ମାଡୁନାହାଁନ୍ତି । ପରସ୍ପର ମଧ୍ୟରେ କଳିଝଗଡ଼ା ଲାଗିରହିଛି । ରାଜୁ ନିଜେ ଅନୁଭବ କରିଛି "ଯେଉଁ ମାମୁଁ ଘରେ ମୋର ବାଲ୍ୟକାଳ କଟିଥିଲା, ଯେଉଁଠି ମାମୁଁ ମାଉସୀ ଅଜା ଆଈ ଯେଉଁ ଭଳି ଗୋଟିଏ କୁକୁଡ଼ା ଓ ତା'ର ଛୁଆ ପାଖାପାଖି ଲାଗି ରହୁଥିଲେ ସେ ଅବସ୍ଥା ନାହିଁ । ଅଛି ପରସ୍ପର ପ୍ରତି ବିଦ୍ୱେଷ, ହିଂସା, ଅସହଣୀ ଭାବ । ସେ ଭାବ ଏତେ ତୀବ୍ର ଯେ କେହି କାହାର ଶିରୀ ଦେଖିପାରନ୍ତି ନାହିଁ । କଥାବାର୍ତ୍ତା ହୁଅନ୍ତି ନାହିଁ । ୟା' ମୁହଁ ଆଡ଼କୁ ତ ତା' ମୁହଁ ସାତକୁ ।"୫ ପୁଣି ଅଜାଙ୍କୁ ଘରେ ବଡ଼ ମାମୁଁଙ୍କୁ ଛାଡ଼ି ଦେଲେ ଆଉ କେହି ପଚାରୁନାହାଁନ୍ତି । ଏଭଳି ଅବସ୍ଥା ଦେଖା ଦେଇଛି ସାମ୍ପ୍ରତିକ ପରିବାରରେ । ପରିବାର ଭିତରେ କେହି କାହାର ନୁହଁନ୍ତି ଯେପରି । 'ଯାତ୍ରା ଡଟ୍ କମ୍'ରେ ପ୍ରତିରୋଧ ସାମଲଙ୍କ ପରିବାର ମଧ୍ୟରେ ପ୍ରତ୍ୟହ କଳହ ଲାଗି ରହିଛି । ପତ୍ନୀ ସୁଷମା ଭୋଳଙ୍କ ପ୍ରତି କଥାରେ ପ୍ରତିରୋଧଙ୍କ ଚିଡଚିଡ୍ ଭାବ ଦେଖାଦେଇଛି । ତାଙ୍କର ଗୋଟିଏ ବିଧବା ନାରୀ ସହିତ ପ୍ରେମର ସମ୍ପର୍କ ଗଢିଉଠିଛି । ପୁଅ ମହେଶ ଗୋଟିଏ

ବେଖିଆଲ ଜୀବନ ବିତାଉଥିବା ମଣିଷ । ସିଏ ଛଇଳି ଝିଅ ଖୁସ୍‌ବୁଙ୍କୁ ଭଲପାଉଛି । ପୁଣି ଝିଅ ଧୋବା ଟୋକା ସାଙ୍ଗରେ ପଳେଇଗଲା । ପରିବାର ଭିତରେ ବୁଝାମଣା ଠିକ୍‌ରେ ରହୁନି। ଗୋଟିଏ ସୁସ୍ଥ ପାରିବାରିକ ଜୀବନ ଭୁଷୁଡ଼ି ପଡିଛି । କେତେକ ଉପନ୍ୟାସରେ ଏଭଳି ମଧ ଦେଖାଦେଇଛି, ପରିବାରରେ ପତ୍ନୀ ମରିଯିବା ପରେ ଅସହାୟ ସ୍ୱାମୀର ସ୍ଥିତି ପୁଅମାନେ ଅନୁଭବ କରିପାରିନାହାଁନ୍ତି । ଯେମିତି "ଛାଇଲେଉଟାଣି ବେଳ"ରେ ଅସହାୟ ଭାବରେ ଚାକର ସହିତ ପଡ଼ିରହିଛି ବୃଦ୍ଧ ବାପା । ତାକୁ କେହି ଆହା କରିବାକୁ ନାହାଁନ୍ତି । ପୁଅ-ବୋହୂ ଚାକିରି କରି ବାହାରେ ରହୁଛନ୍ତି । ଏଭଳି ପରିସ୍ଥିତି ସାମ୍ପ୍ରତିକ ପରିବାରର । ପାରିବାରିକ ଜୀବନ ଆଉ ସୁସ୍ଥ ହୋଇ ରହିନାହିଁ । କାରଣ ମଣିଷର ନୈତିକ ମୂଲ୍ୟବୋଧର ମୃତ୍ୟୁ ଘଟିଛି ।

ସମ୍ପ୍ରତି ସମାଜରେ କଳୁଷିତ ରାଜନୀତି ଗୋଟିଏ ବିରାଟ ସମସ୍ୟା । ରାଜନୀତି କହିଲେ ସାଧାରଣତଃ ଦେଶପ୍ରୀତିର ସାକାରାତ୍ମକ ଦୃଷ୍ଟିଭଙ୍ଗୀରେ କର୍ତ୍ତବ୍ୟ ପାଳନକୁ ବୁଝାଏ । ଏକଥା ମଧ ସତ୍ୟ ଯେ ଜୀବନ ନିର୍ବାହ ପାଇଁ ମଣିଷ ରାଜନୀତି ସହିତ ସମ୍ପୃକ୍ତ ହୋଇଛି ରାଷ୍ଟ୍ର ଗଠନ ହେବା ଦିନଠୁ । ଆମେ ଯଦି ରାଜନୀତି ବିଷୟକୁ ଆଲୋଚନା କରିବା ତେବେ ସମାଜ ମଧରେ ମଣିଷର ବ୍ୟକ୍ତିତ୍ୱକୁ ହିଁ ଦେଖିପାରିବା । ଦେଶ ମଧରେ ବିଭିନ୍ନ ଗୋଷ୍ଠୀ ଓ ମତବାଦର ଲୋକ ବସବାସ କରୁଛନ୍ତି । ସେମାନଙ୍କ ଆର୍ଥନୀତିକ-ସାମାଜିକ ନିରାପତ୍ତା ଗୋଟିଏ ଶୃଙ୍ଖଳରେ ଆବଦ୍ଧ ନୁହେଁ । ତେଣୁ ଗୋଷ୍ଠୀ ଗୋଷ୍ଠୀ, ବ୍ୟକ୍ତି ବ୍ୟକ୍ତି ମଧରେ ତାରତମ୍ୟ ପରିଲକ୍ଷିତ । ଏହି ହେତୁ ପରସ୍ପର ମଧରେ କଳହ, ଅନ୍ୟାୟ, ଅତ୍ୟାଚାର ଆଦି ସ୍ୱତଃ ସୃଷ୍ଟି ହୁଏ। ପୁଣି ସଂକୀର୍ଣ୍ଣ ସ୍ୱାର୍ଥଜଡ଼ିତ ରାଜନୀତିକ ନେତାମାନଙ୍କର ଅଭିଳାଷ ଅସୀମ । ସେମାନଙ୍କ ହାତରେ ଶାସନଭାର ରହିଥିବାରୁ ନିରୀହ ଜନସାଧାରଣଙ୍କ ଉନ୍ନତି ପରିବର୍ତ୍ତେ ଅବନତି ହେଉଛି । ଫଳରେ ସୁସ୍ଥ ସମାଜର ମେରୁଦଣ୍ଡ ଭାଙ୍ଗିପଡ଼ିଛି । ତେଣୁ ଔପନ୍ୟାସିକ ପାଳଙ୍କ ଉପନ୍ୟାସରେ ରାଜନୀତିର ନକାରାତ୍ମକତା ବିରୁଦ୍ଧରେ ସ୍ୱର ତୀବ୍ର । 'ଦୁର୍ଗ ପତନର ବେଳ'ରେ ସମୟକ୍ରମେ ସୁମନପୁର ଗାଁରେ ରାଜନୀତି ପଶିଲା । ଲୋକେ ଦଳଭୁକ୍ତ ହୋଇ କଳିକଜିଆରେ ଜରିମାନାର ବି ଆଶ୍ରୟ ନେଲେ ଦଳର ଛତ୍ର ତଳେ । ସ୍ଥାନୀୟ ଦଳପତି ନେଲେ ତା'ର ନେତୃତ୍ୱ ଏବଂ ଧୀରେ ଧୀରେ ଗାଁଟି କଳି-କଜିଆ, ରାଗ-ଅଭିମାନ, ବାଦ-ବିବାଦ, ହିଂସା-ଦ୍ୱେଷ, ମନାନ୍ତରକୁ ନେଇ ଉଠିଆସିଲା ରାଜନୀତି ସ୍ୱାର୍ଥକୈନ୍ଦ୍ରିକ ସାଲିସ୍‌ହୀନ୍ କ୍ରୀଡ଼ାକ୍ଷେତ୍ରକୁ । ଏହାରି ଭିତରେ ସତ୍ୟ ସ୍ୱାଇଁର ନେତୃତ୍ୱରେ ନିଃସ୍ୱାର୍ଥ ଯୁବକଗୋଷ୍ଠୀ ଚାଷର ଉନ୍ନତି ପାଇଁ, କଳୁଷିତ ରାଜନୀତିରେ ଭୁଷୁଡି ପଡୁଥିବା ସରଳ ଗ୍ରାମ୍ୟ ଜୀବନର ଧ୍ୱସ୍ତବିଧ୍ୱସ୍ତ ପରିସ୍ଥିତିକୁ ରୋକିବା ପାଇଁ ଏବଂ ସରକାରଙ୍କ ମିଥ୍ୟା ପ୍ରତିଶ୍ରୁତି ବିରୁଦ୍ଧରେ ସ୍ୱର ଉତ୍ତୋଳନ ପାଇଁ ବାହାରିପଡ଼ିଛନ୍ତି । ସେହିପରି 'ଆମ ସମୟର ଦୁଃଖ'ରେ ଶାମ ରାଜନୀତିରେ ପାଦଥାପି ବିରୋଧି ଦଳର ବିଧାୟକ ପାର୍ଥ ସାମନ୍ତଙ୍କ ପାଖଲୋକ ହୋଇଯାଇଛି । କିଛିଦିନ ପରେ ବାସ୍ତବ ରାଜନୀତିର କର୍ଦ୍ଦମାକ୍ତ ଅଞ୍ଚଳ ଭିତରକୁ ପଶିଯାଉଛି ଆଉ କେଇପାଦ । ପାର୍ଥ ସାମନ୍ତ ଓ ଶାସକ ଦଳର ମନ୍ତ୍ରୀ ଗୋପନରେ ଦେଖାସାକ୍ଷାତ୍, ମିଳାମିଶା ଦେଖି ଅଭିଭୂତ ହୋଇପଡ଼ିଛି । ବିରୋଧୀ ଦଳ ଆଉ ଶାସକ ଦଳ ଭିତରେ ତଫାତ୍ ନାହିଁ । ସେମାନଙ୍କ ଭିତରେ ଯୋଗସୂତ୍ର ଚମତ୍କାର । ସେଇଠୁ ସିଏ ଜାଣିପାରିଥିଲା ଆଦର୍ଶ ନାଁରେ ଚାଲିଥିବା ଭଣ୍ଡାମିକୁ । ଜନସେବା ନାଁରେ ଚାଲିଥିବା ସ୍ୱାର୍ଥପରତାକୁ । ବିଧାନସଭା ସରଗରମ ହେଲା ସମୟରେ ଆମକୁ ଲାଗୁଛି ଦେଶ ସେବାରେ ସମସ୍ତେ ଉତ୍ସର୍ଗୀକୃତ । ଶ୍ୟାମ ଏସବୁ ପାଇଁ ଅଶାନ୍ତ, ବିକ୍ଷୁବ୍ଧ ହୋଇପଡ଼ିଲା। କୌଣସି ନେତାଙ୍କ ପ୍ରତି ଆଉ ସମ୍ମାନ ନଥିଲା । ସେମାନେ ଦିନେ ଯେତିକି ବଡ଼ ଦେଖାଯାଉଥିଲେ ତାକୁ, ଆଜିକାଲି ସେତିକି ବଡ଼ ହୀନ ମନେ ହେଉଥିଲେ । ଆଖିକି ଛୋଟ ଦେଖାଯାଉଥିଲେ ତାକୁ। ସେହି ଦିନଠୁ ଆଉ ପାର୍ଥ ସାମନ୍ତଙ୍କୁ ଭେଟିବାକୁ କି ସନ୍ଧ୍ୟାରେ ପାର୍ଟି ଅଫିସକୁ ହରିବୋଲ ପକେଇବାକୁ ସେ ଗଲାନାହିଁ । ଉକ୍ତ ଉପନ୍ୟାସରେ ଦେଶ ସେବା ନାଁରେ ଲୋକମାନଙ୍କୁ ଶୋଷଣ କରିଚାଲିଥିବା ନିର୍ମଳ ଭାବମୂର୍ତ୍ତି ନେତାମାନଙ୍କର ସ୍ୱରୂପ ଓ ରାଜନୀତିର କଳୁଷିତ ବାତାବରଣ ମଣିଷର ସାମାଜିକ ଜୀବନକୁ ଆକ୍ରାନ୍ତ କରିବାର ଚିତ୍ର, ରାଜନୀତିରେ ଦେଖାଯାଉଥିବା ଦ୍ୱନ୍ଦ୍ୱ-ସଂଘର୍ଷ ଆଦି ଦର୍ଶାଯାଇଛି । ଓଡ଼ିଆ ସାହିତ୍ୟରେ ଅନେକ ରାଜନୀତିକ ଉପନ୍ୟାସ ଦେଖାଯାଉଥିଲେ ମଧ ଔପନ୍ୟାସିକ ପାଳଙ୍କ ଉପନ୍ୟାସ ବ୍ୟତୀତ ରାଜନୀତିଗତ କଳୁଷିତ ବାତାବରଣରେ ସମାଜ ଭୁଷୁଡ଼ି ପଡୁଥିବାବେଳେ ତହିଁରୁ ମୁକୁଳିବାର ରାସ୍ତା ଖୁବ୍ କମ୍ ଉପନ୍ୟାସରେ ଦେଖାଦିଏ ।

ସମାଜକୁ ଜାତିପ୍ରଥା ଯୁଗଯୁଗ ଧରି ବିଭାଜିତ ଓ କଳୁଷିତ କରି ରଖିଛି । ଏହି ବର୍ଗୀକୃତ ବୈଷମ୍ୟ ଓ ଅସମତା ଜନ୍ମରୁ ପ୍ରତ୍ୟେକ ବ୍ୟକ୍ତିର ସାମାଜିକ ସ୍ଥାନ ନିରୂପଣ କରୁଛି । ଜାତିଗତ ଅପସାଂସ୍କୃତିକ ମୂଲ୍ୟଚୟକୁ ସାମାଜିକ ସ୍ୱୀକୃତି ପ୍ରଦାନ ଦ୍ୱାରା ନିମ୍ନ ଜାତିର ବୋଲି କଥିତ ହେଉଥିବା ଲୋକେ ସବୁବେଳେ ନିନ୍ଦିତ । ସବୁଠୁ ବେଶୀ ବୈବାହିକ କ୍ଷେତ୍ରରେ ଏହାର ପ୍ରଭାବ ପରିଲକ୍ଷିତ । ଦୁଇଟି ଭିନ୍ନ ଜାତିର ନାରୀ ପୁରୁଷ ମଧରେ ବିବାହ ଏହି ଜାତିପ୍ରଥା ଯୋଗୁଁ ପ୍ରତିବନ୍ଧକ ସାଜିଛି । ଗୋଟିଏ ଜାତି ଆଉ ଗୋଟିଏ ଜାତି ସହିତ ବନ୍ଧୁତ୍ୱ ସ୍ଥାପନ କରିବା ସମ୍ଭବ ହୋଇପାରୁନି । ଏଭଳି ପରିସ୍ଥିତି ଉପନ୍ୟାସରେ ପ୍ରକାଶ ପାଇବା ସ୍ୱାଭାବିକ । କାରଣ ଔପନ୍ୟାସିକ ପାଳଙ୍କ ଅଧିକାଂଶ ଚରିତ୍ର ପ୍ରତ୍ୟହ ଆଖି ଆଗରେ ଦେଖୁଥିବା ଅସହାୟ ଦଳିତ ସମ୍ପ୍ରଦାୟର । 'ଓୟେ ପୁଅ ମା', 'ପଣ୍ଡୁରଙ୍ଗୀ ନିବାସ', 'ଆମ ସମୟର ଦୁଃଖ', "ଗାନ୍ଧି ଛକରୁ ଟିକିଏ ଆଗକୁ' ଆଦି ଉପନ୍ୟାସରେ ଯଥାକ୍ରମେ ନାଗା ଓ ସୋରି, ପଣ୍ଡୁ ଓ ରଙ୍ଗୀ, ଯଦୁ ଓ ମଞ୍ଜୁବାଳା, ଚଣ୍ଡ ଓ ଜଲ୍‌ସା ପରସ୍ପର ଭିନ୍ନ ଭିନ୍ନ ଜାତିର ହୋଇଥିବାରୁ ସେମାନଙ୍କ ମଧରେ ବିବାହ ସାମାଜିକ ରୀତିରେ ହୋଇପାରିନଥିଲା । ସେଥିପାଇଁ ବହୁ ସଂଘର୍ଷର ଶିକାର ହେବାକୁ ପଡ଼ିଥିଲା । ନାଗା କାଳୁଆ ଜାତିର ହୋଇ ବାରବୁଲା ଘୁଷୁରିଆ ତଥା ମାଙ୍ଗାତା ଜାତିର ଝିଅ ସହିତ ବିବାହ ହୋଇଛି। ଏ ବିବାହ ପାଇଁ ଘୁଷୁରିଆ ସମ୍ପ୍ରଦାୟରେ ପଞ୍ଚପରମେଶ୍ୱର ବସିଥିଲା । ପକ୍ଷୀକ୍ଷେତ୍ରରୁ ସୋରିକୁ ବାସନ୍ଦ କରିଦିଆଗଲା । ସେ ସମୟକୁ ନାଗା ପହଞ୍ଚି ଯାଇ ସୋରିକୁ ଆପଣେଇ ନେଇଥିଲା । ସେହିପରି ଅନାଥ ପିଲା ପଣ୍ଡୁ ଲଖଣ ସୋଇଁ ଘରେ ବଢିଥିଲା ଏବଂ ରଙ୍ଗୀ ଥିଲା ହରିଜନ ଝିଅ । ପରସ୍ପର ମଧରେ ପ୍ରେମ ସମ୍ପର୍କ ଗଢ଼ିଉଠିଛି । କିନ୍ତୁ ରଙ୍ଗୀର ଜାତି ଭାଇମାନେ ପଣ୍ଡୁକୁ ଏହି ଜାତି ପ୍ରସଙ୍ଗକୁ କେନ୍ଦ୍ର କରି ବହୁତ ଟାହିଟାପରା କରିଛନ୍ତି ରଙ୍ଗୀ ଋତୁମତୀ ହେବାବେଳେ ଦିଆଯାଉଥିବା ଭୋଜିରେ । ଯାହା ପଣ୍ଡୁକୁ ବହୁତ ବାଧିଛି । ପରବର୍ତ୍ତୀ ପର୍ଯ୍ୟାୟରେ ସେମାନଙ୍କ ପ୍ରେମର ପରାକାଷ୍ଠା ପାଇଁ

ଜାତିଭେଦର ଉର୍ଦ୍ଧ୍ୱର ରହି ଜ୍ୱଳନ୍ତ ପଣ୍ଡୁରଙ୍ଗୀ ନିବାସରେ ଝାସ ଦେଇଛନ୍ତି । ଯଦୁ ଖଣ୍ଡାୟତ ଘରର ପୁଅ ମଂଜୁବାଳା ଥିଲା ବ୍ରାହ୍ମଣ ଘରର ଝିଅ । ପରସ୍ପର ମଧ୍ୟରେ ପ୍ରେମ ସମ୍ପର୍କ ଗଢ଼ି ଉଠିଥିବା ଯୋଗୁଁ ବିବାହ ପାଇଁ ବହୁତ ରକ୍ତାକ୍ତ ସଂଘର୍ଷ କରିବାକୁ ପଡ଼ିଛି । ଘର ଲୋକଙ୍କର ନାନା ତାଡ଼ନା ସହ୍ୟ କରିବାକୁ ପଡିଛି । ପରିଶେଷରେ ଦୁଇଜଣ ଘରଛାଡ଼ି ସହରକୁ ପଳେଇବା ବ୍ୟବସ୍ଥା କରିଛନ୍ତି । ସେହିପରି ଚଣ୍ଡ ବ୍ରାହ୍ମଣ ପିଲା ଓ ଜଲ୍‌ସା ଅଲଗା ଜାତିର । ତେଣୁ ବାପା ନାରାୟଣ ମିଶ୍ର ଚଣ୍ଡକୁ ଗ୍ରହଣ କରିପାରିନଥିଲେ । ଏଥିପାଇଁ ସିଏ ଘର ଛାଡ଼ି ପଳେଇଗଲା । ବାସ୍ତବିକ ସାମ୍ପ୍ରତିକ ସମାଜ ଯେତିକି ଆଧୁନିକତାର ବଶବର୍ତ୍ତୀ ହେଲେ ମଧ୍ୟ ଜାତିପ୍ରଥାକୁ ଛାଡ଼ିପାରୁନାହିଁ । ଜାତିପ୍ରଥାକୁ ନେଇ ଉଚ୍ଚନୀଚ ଭେଦଭାବ ରଖି ଏହି ସମାଜ ହରିଜନ ଝିଅ ମୁନିକୁ ନିନ୍ଦା କରିଛି, 'ହାଏ ମୁନି, କେମିତି ଅଛ ?'ରେ । 'ଯାତ୍ରା ଡଟ୍ କମ୍'ରେ ମଧ୍ୟ ଅନେକ ଚରିତ୍ର ଏଭଳି ସଂଘର୍ଷ କରି ବିବାହ କରିଥିବା ଦୃଷ୍ଟିଗୋଚର । ପ୍ରତିରୋଧ ସାମଲଙ୍କ ଝିଅ ଗୋଟେ ଧୋବା ଟୋକା ସହିତ ପଳେଇଗଲା । ମହେଶ ମଧ୍ୟ ଅଲଗା ଜାତିର ଖୁସବୁର ପ୍ରେମରେ ମସଗୁଲ । ପ୍ରକୃତରେ "ବର୍ଣ୍ଣ ବ୍ୟବସ୍ଥାରୁ ଉତ୍ପନ୍ନ ଜାତିପ୍ରଥା ସାମାଜିକ ଜୀବନରେ ଦୃଢ଼ ହୋଇଯିବା ଦ୍ୱାରା ସମାଜର ନୈତିକ ଶୃଙ୍ଖଳା ଜାତିଭିତ୍ତିକ ହୋଇଗଲା । ବ୍ୟକ୍ତିର ସାମାଜିକ କର୍ତ୍ତବ୍ୟବୋଧ ଜାତି ଭିତରେ ସୀମିତ ରହିବା ଦ୍ୱାରା ସାର୍ବଜନୀନ ନୈତିକ ମୂଲ୍ୟବୋଧ ପ୍ରତି ସାମାଜିକ ଉଦାସୀନତା ଦେଖାଦେଲା । ଏହା ଫଳରେ ସାମାଜିକ ଅବକ୍ଷୟ ଜାତୀୟ ଜୀବନକୁ ଆସ୍ତେ ଆସ୍ତେ ବିପର୍ଯ୍ୟସ୍ତ କଲା ।"୬ ଏହି ବିପର୍ଯ୍ୟସ୍ତ ଅବସ୍ଥାରୁ ମୁକୁଳିବା ପାଇଁ ବା ଅନ୍ତର୍ନିହିତ କୁପରିଣାମର ମୁକାବିଲା ପାଇଁ ଯେଭଳି ମହାବୀର, ବୁଦ୍ଧ, ଶିଖ୍‌ଧର୍ମ, ଭକ୍ତି ଆନ୍ଦୋଳନ, ବ୍ରାହ୍ମ ସମାଜ, ଆର୍ଯ୍ୟ ସମାଜ, ରାମକୃଷ୍ଣ ମିଶନ, ଥିଓସିଫିକାଲ ସୋସାଇଟି, ଆମ୍ବେଦକର ଆନ୍ଦୋଳନ କରିଥିଲେ ସେଭଳି ଔପନ୍ୟାସିକ ପାଳ ତାଙ୍କ ଉପନ୍ୟାସରେ ଜାତିଗତ ଭେଦଭାବକୁ ଭ୍ରୁକ୍ଷେପ ନ କରି ପରସ୍ପର ମଧ୍ୟରେ ଗୋଟିଏ ସମ୍ପର୍କର ସେତୁ ବାନ୍ଧିବାର ପ୍ରୟାସ କରିଛନ୍ତି । ଯାହା ଜାତିଗତ ବ୍ୟବସ୍ଥା ବିରୁଦ୍ଧରେ ଗୋଟିଏ ସ୍ୱର ହୋଇଉଠିଛି ।

ସମାଜରେ ପ୍ରଚଳିତ ବିଭିନ୍ନ ପାରମ୍ପରିକ ପ୍ରଥା ମଧ୍ୟ ବିଶିଷ୍ଟ ଭୂମିକା ଗ୍ରହଣ କରିଥାଏ । କେତେକ ସାମୂହିକ ଥିଲାବେଳେ କେତେକ ଜାତିଭିତ୍ତିକ । ଔପନ୍ୟାସିକ ପାଳଙ୍କ ଉପନ୍ୟାସରେ ଜାତିଗତ ଅନୁଯାୟୀ ଅନେକ ପ୍ରଥା ପାଳନ କରିବାର ଦେଖାଯାଏ । 'ପଣ୍ଡୁରଙ୍ଗୀ ନିବାସ'ରେ ରଙ୍ଗୀ ରତୁମତୀ ହେବା ଦିନ ସନ୍ଧ୍ୟାରେ ହରିଜନ ସାଇରୁ ହୁଳହୁଳି ଶଙ୍ଖଧ୍ୱନି ବାଜିଥିଲା । ସାହାଡ଼ା ସୁନ୍ଦରୀ ପାଖରେ ଆରମ୍ଭ ହୋଇଥିଲା ଜନ୍ତାଳ । କୁକୁଡ଼ା ବଳି ପଡ଼ିଲା । ପଞ୍ଚୁଭାଇଙ୍କୁ ନେଇ ଭୋଜିଭାତର ଆୟୋଜନ ହୋଇଥିଲା । ପ୍ରକୃତରେ ଲୋକଙ୍କର ଧର୍ମବିଶ୍ୱାସ କେଉଁ କାଳରୁ ରହିଆସିଛି । ଯୁଗଯୁଗ ଧରି ଏହି ଧର୍ମ ଭାବନା ବ୍ୟକ୍ତି ଓ ଗୋଷ୍ଠୀ ଜୀବନକୁ ପ୍ରଭାବିତ କରିଛି । ଏହା ସମାଜର ସାଂସ୍କୃତିକ ବିକାଶରେ ସଂଶ୍ଳିଷ୍ଟ । ଅଧିକାଂଶ କ୍ଷେତ୍ରରେ ଏହି ଧର୍ମକୁ କେନ୍ଦ୍ରକରି ଲୋକମାନଙ୍କର ମାନସିକତା କାର୍ଯ୍ୟକାରୀ ହୋଇଥାଏ । 'ଗଣ୍ଡଭୈରବ'ରେ ଏଭଳି ଏକ ଧର୍ମ ଆଧାରିତ ଜୀବନ ନିର୍ବାହର କଥା କୁହାଯାଇଛି । କୋକିଳ ମାଲ୍ୟାଣୀ, ନିତ୍ୟାନନ୍ଦ ଏବଂ ହରିପ୍ରିୟା ଏହି ବିଶ୍ୱାସରେ ବିତାଉଥିଲେ ଜୀବନ । ଶ୍ରୀକ୍ଷେତ୍ରରେ ଦେବଦାସୀ ସ୍ୱାତୀଲଗ୍ନାକୁ ମାଲ୍ୟାଣୀ କୋକିଳ ପୋକଖିଆ ବାସିଫୁଲ ଦେଇଥିବାରୁ ସ୍ୱାତୀଲଗ୍ନା ତାକୁ ଜଗନ୍ନାଥଙ୍କୁ ଅର୍ପଣ ନକରି ପାଦତଳେ ଅଜାଡ଼ି ଦେଇଥିଲା । ଏହି ଅପରାଧକୁ କେନ୍ଦ୍ର କରି ଶ୍ରୀମନ୍ଦିରରେ ବଡ଼ପଣ୍ଡା କୋକିଳକୁ ଅଭିଶାପ ଦେଲେ । ଯେମିତି ଏପରି ଅପରାଧ ପାଇଁ କ୍ଷମା ନାହିଁ । ବଞ୍ଚିତ କରିଦିଆଗଲା ଜଗନ୍ନାଥଙ୍କ ସେବାରୁ । କୋକିଳ ନିଜକୁ ଦୋଷୀ ମନେକରି କୃତକର୍ମର ପାପରୁ ମୁକ୍ତି ପାଇଁ ଅଶ୍ୱଦ୍ୱାରକୁ ଆତ୍ମହତ୍ୟା କରିବାକୁ ଯାଉଥିଲା । ଏହି ସମୟରେ ପୁଅ ନିତ୍ୟାନନ୍ଦ ଫେରେଇଆଣି ଏ ପାପରୁ ମୁକ୍ତି ପାଇଁ ବାଟ ବତେଇଲା । ସେହିପରି ନିତ୍ୟାନନ୍ଦ ଓ ହରିପ୍ରିୟାଙ୍କ ବହୁଦିନର ଅପେକ୍ଷା ପରେ ପୁତ୍ର ଚିତ୍ରସେନର ଜନ୍ମ ହୋଇଛି । କିନ୍ତୁ ପୁଅକୁ ନେଇ ହରିପ୍ରିୟା ଶାନ୍ତିରେ ରହିପାରୁନି । ଜ୍ୟୋତିଷ ଶାସ୍ତ୍ର ଅନୁସାରେ ପୁଅକୁ ବଞ୍ଚେଇବାକୁ ହେଲେ ସ୍ୱାମୀର ମୃତ୍ୟୁ ଘଟିବ । ତାର ପ୍ରତିକାର ଲାଗି ଜ୍ୟୋତିଷ ବିଦ୍ୟା ଅନୁସାରେ ପୁଅକୁ ବିକ୍ରି କରିଦେବା ପାଇଁ ସ୍ଥିର କରିଛନ୍ତି । ପୂଜାବିଧି ଅନୁସାରେ ବେଣୁ ଗୋଛାୟତ ତାଙ୍କ ପୁଅକୁ କିଣିଛି ଏବଂ ନାଁ ଦେଇଛନ୍ତି ହାଡ଼ିଆ । କେଉଁ ପ୍ରାଚୀନ କାଳରୁ ଏଭଳି ଏକ ବିଶ୍ୱାସ ରହିଆସିଛି । ଏସବୁ ହିଁ ତାଙ୍କୁ ଅସ୍ଥିର କରିପକାଇଛି । ଏଠି ଧର୍ମକୁ କେନ୍ଦ୍ର କରି ସମାଜ ଭିତରେ ଜୀବନ ବଞ୍ଚିବା କଷ୍ଟପ୍ରଦ ହୋଇଛି । 'ଗାନ୍ଧିଛକରୁ ଟିକିଏ ଆଗକୁ'ରେ ପ୍ରଚଳିତ ସମାଜ ବ୍ୟବସ୍ଥା ଅନୁସାରେ ନାରାୟଣ ମିଶ୍ର ବଞ୍ଚୁଥିଲେ । ପାରମ୍ପରିକ ଧର୍ମକୁ ଜାବୁଡ଼ି ଧରି ପୂଜାପାଠରେ ଜୀବନ ବିତେଇବା ତାଙ୍କର ପରମ ଲକ୍ଷ୍ୟ ଥିଲା । ପୁତ୍ର ଉଦୟକୁ କହୁଥିଲେ ସେମାନେ ପରମ୍ପରାବାଦୀ ବ୍ରାହ୍ମଣ ହୋଇଥିବାରୁ ପୂଜାପାଠ କରି ଜୀବନ ଚଳିଯିବା କଥା । ସିଏ ଚାହୁଁଥିଲେ ଉଦୟ ବେଶୀ ପାଠ ନ ପଢୁ, ବଡ଼ ଭାଇ ପରି ଦେବଦେବୀଙ୍କ କାମରେ ମନ ପୂରାଉ । ମାତ୍ର ଉଦୟ ଚାହୁଁନଥିଲା ଏଭଳି ଦରିଦ୍ର ଜୀବନ ବଞ୍ଚିବାକୁ । ଧର୍ମକୁ ଜୀବନର ସର୍ବୋତ୍ତମ ବିଷୟ ଭାବେ ଗ୍ରହଣ କରି ଅନ୍ୟ ଉପରେ ଲଦିଦେବା ପରିସ୍ଥିତି ଦେଖାଦେଇଛି ଏଠି । ପୁଣି କେତେକ ସ୍ଥଳରେ ଧର୍ମ ନାଁରେ ଚାଲିଛି ଭଣ୍ଡାମି । ଧର୍ମ ଜନସାଧାରଣଙ୍କ ଅଫିମ ଭଳି ନିଶା ହୋଇଥିବାରୁ ସେଇ ବିଶ୍ୱାସରେ ଠକିବା ପାଇଁ ବିଭିନ୍ନ ଲୋକ ଏହାକୁ ମାଧ୍ୟମ ଭାବରେ ଗ୍ରହଣ କରିଛନ୍ତି । ଏଭଳି ଦେଖାଦେଇଛି 'ଅପଦେବତା'ରେ । ମଫସଲ ଗାଁରେ ଜନ୍ମ ନେଇଥିବା ବିଜୁଭାଇ ବିର୍ଜୁ ମହାରାଜ ପାଲଟି ଯାଇଛନ୍ତି । ଭୁବନେଶ୍ୱର ତଳକୁ ଦଶ ଏକର ଜମିରେ ତାଙ୍କର ଆଶ୍ରମ । ସବୁ ଅସାଧ ସାଧନ କରିପାରନ୍ତି ବୋଲି ଖ୍ୟାତି ଅଛି । ସବୁ ମନ୍ତ୍ରୀ ତାଙ୍କରି ପରାମର୍ଶରେ ଚଳନ୍ତି । ତାଙ୍କର ଯେତେ ଧର୍ଷଣ, ଠକାମି, ଗୁଣ୍ଡାମି, ନିଶାଦ୍ରବ୍ୟ କାରବାର ସବୁ ଅଭିଯୋଗ ଚପିଯାଏ ଫାଇଲ ତଳେ । ଗୋଟିଏ ବଡ଼ ଶିଳ୍ପୀର କାମ କରେଇ ଦେବ ବୋଲି ଦେଢ଼ କୋଟି ଟଙ୍କା ଲାଞ୍ଚ ନେଇ ଧରାପଡ଼ି ଜେଲ ଦଣ୍ଡ ଭୋଗିଲେ । ପ୍ରକୃତରେ ଏହି ଧର୍ମ ଧାରଣା ମଣିଷର ଚିର ସହଚର । ଗୋଟିଏ ସୁସ୍ଥ ଜୀବନ ବଞ୍ଚିବାରେ ଯେତେ ବ୍ୟାଘାତ ହେଲେ ବି ସେ ତାକୁ ବାଦ୍‌ଦେଇ ପାରୁନାହିଁ । ତେଣୁ ଔପନ୍ୟାସିକ ପାଳ ସମାଜର ଚିତ୍ର ଆଙ୍କିଲାବେଳେ ମଣିଷର ଏହି ଧର୍ମୀୟ ଭାବନାକୁ ପ୍ରକଟିତ କରିଛନ୍ତି ।

ଔପନ୍ୟାସିକ ପାଳଙ୍କ ଉପନ୍ୟାସରେ ଅଧିକାଂଶ ଚରିତ୍ର ସମାଜର ଅବହେଳିତ ସମ୍ପ୍ରଦାୟର ଓ ସେମାନେ ଅଭାବ ଅନଟନରେ ଜୀବନ ବିତାଉଥିବା ମଣିଷ । ସମାଜ ଯାହାକୁ ପାପ ବୋଲି ଆଖ୍ୟା ଦେଉଛି, ସେହି ପାପକୁ ମଧ୍ୟ ଆପଣେଇ ନେଇଛନ୍ତି କେବଳ ଅଭାବ ଭିତରେ ଜୀବନକୁ ବଞ୍ଚାଇବା ପାଇଁ । ସେଥିପାଇଁ ଉପନ୍ୟାସରେ ଦି'ମୁଠା ଖାଇବାକୁ

ପାଉନଥିବା ବ୍ୟକ୍ତିଙ୍କ ପାଇଁ ସମବେଦନାର ସ୍ୱର ଝଂକୃତ । 'ପାପ ପରି ନିଜର'ରେ ସୁଶାନ୍ତ (ଗେଡୁ)ର ପରିବାର ଏକ ଅସହାୟ ପରିବାର । ଗେଡୁର ମା' ଦେହ ଧନ୍ଦା କରେ । ଦି'ଓଳି ମୁଠାଏ ଖାଇବା ପାଇଁ ପାଉନଥିବା ଏ ପରିବାର ସମାଜର ନାନା ନିନ୍ଦା ସତ୍ତ୍ୱେ ଏଭଳି ବ୍ୟବସାୟକୁ ଆପଣେଇ ନେଇଛି । ସେଥିପାଇଁ ଗେଡୁର ଆଈବୁଢ଼ୀ କହିଛି, "ଗୋଟିଏ ଦି'ଟା ଗରାଖ ନ ଧରିଲେ, ପାଞ୍ଚ ଦଶ ଟଙ୍କା ମିଳିବ ନାହିଁ । ଆମେ ରାନ୍ଧିବୁ କ'ଣ ? ଏ ଗାଡ଼ ପେଟରେ ପଶିବ କ'ଣ ?"(୭) ସେହିପରି ସୁସୁ ମଧ ଚା' ଦୋକାନରେ କାମ କରେ । କିନ୍ତୁ ଏ ଚରିତ୍ର ଭିତରେ ସ୍ୱାଭିମାନ ଲୁଚି ରହିଛି । କାମ କରି ରୋଜଗାର କରିବାଟା ଶିଖିଛନ୍ତି । କିନ୍ତୁ କାହାଠାରୁ ଖାଲିଟାରେ ଟଙ୍କା ନେବା ପାଇଁ ଚାହିଁ ନାହାନ୍ତି । ସୁବର୍ଣ୍ଣା ପଇସା ଖାଲିଟାରେ ଯାଚିଥିଲେ ମଧ ଗ୍ରହଣ କରିନାହିଁ । ବାସ୍ତବିକ ତାଙ୍କର ଚରିତ୍ର ଗୁଡ଼ିକ ଯେତିକି ଅଭାବ ଅନଟନରେ ଥିଲେ ବି ସ୍ୱାଭିମାନକୁ ନେଇ ବଞ୍ଚିଛନ୍ତି । ସେହିପରି 'ପଣ୍ଡୁରଙ୍ଗୀ ନିବାସ'ରେ ପଣ୍ଡୁ ଅଲଗା ଜାତିର ଅନାଥ ଅସହାୟ ପିଲା ବୋଲି ହରିଜନ ସାଇ ଦ୍ୱାରା ହଟହଟା ହେଉଥିଲା । ତାକୁ ଦିନେ ରାସ୍ତା କଡ଼ରୁ ଉଠେଇ ଆଣିଥିଲା ଲଖଣ ସ୍ୱାଇଁ । ସେହିପରି ସାମ୍ପ୍ରତିକ ସମାଜରେ ବୃଦ୍ଧମାନେ ଅବହେଳିତ ଭାବେ ଜୀବନ ବିତାଉଥିବାର ଦେଖାଯାଏ । ଏଭଳି ବୃଦ୍ଧମାନଙ୍କ ଅବହେଳିତ ଅବସ୍ଥାର ଚିତ୍ର 'ଜରାନିବାସ'ରେ ପ୍ରଦର୍ଶିତ । ଜରାନିବାସ ଭାଁପୁର ଘାଟପଡ଼ା ରାସ୍ତା କଡ଼ରେ ରହିଛି । ଏହା ଘରୁ ବିତାଡ଼ିତ ବା ଯେଉଁ ବୃଦ୍ଧମାନେ ଅସହାୟ ଭାବେ ଜୀବନ ବଞ୍ଚୁଛନ୍ତି ସେମାନଙ୍କ ଆଶ୍ରୟସ୍ଥଳ । 'ହାଏ ମୁନି, କେମିତି ଅଛ!'ରେ ହରିଜନ ଝିଅ ମୁନି ସମାଜ ଦ୍ୱାରା ସଦା ନିନ୍ଦିତ । ବାସ୍ତବିକ ସାମ୍ପ୍ରତିକ ସମାଜରେ ଅସହାୟ ସବୁବେଳେ ଅସହାୟ ହୋଇ ରହିଛି ।

ସମାଜରେ ଅନେକ ପ୍ରଥା ଅନୁସୃତ । ଏହା ପରମ୍ପରା କ୍ରମେ ଚଳିଆସୁଛି । ଏ ଭିତରେ କେତେକ ପ୍ରଥାକୁ ସମାଜ ଅନ୍ଧ ଭାବରେ ଗ୍ରହଣ କରିଥାଏ । ଯେମିତି 'ଦୁର୍ଗ ପତନର ବେଳ'ରେ ସତ୍ୟ ସ୍ୱାଇଁକୁ ବାପ ନାଗୁ ସ୍ୱାଇଁ ମରିଯିବା ପରେ ପ୍ରଥା ଅନୁଯାୟୀ ବ୍ରାହ୍ମଣ ଭୋଜନ କରାଇବା ସମ୍ଭବ ହୋଇପାରିନି । କାହିଁକିନା ବଞ୍ଚିଥିଲାବେଳେ ଯେଉଁ ବାପକୁ ଔଷଧ ଟିକେ କିଣିଦେବା ପାଇଁ ତା' ପକ୍ଷେ ସମ୍ଭବ ହୋଇପାରିନଥିଲା, ଏବେ କରଜ କରି ଜାତି ଭାଇଙ୍କୁ ଖାଇବାକୁ ଦେବା ଏକ ଅମାନବୀୟ ବୋଲି ଅନୁଭବ କରିଥିଲା । ସେଥିପାଇଁ ବ୍ରାହ୍ମଣ ଭୋଜନ ଲାଗି ମନା କରିଦେଲା । ସେହିପରି ଅସ୍ପୃଶ୍ୟତାକୁ କେନ୍ଦ୍ର କରି ଅନେକ କଠୋର ବିଧି ବ୍ୟବସ୍ଥା ସମାଜରେ ରହିଛି । ଏହି ବିଧି ଅନୁସାରେ ବାବାଜୀ ଭୋଇ ହରିଜନ ସାଇର ହୋଇଥିବାରୁ କୂଅରୁ ପାଣି କାଢ଼ିବା ଯୋଗୁଁ ଗାଁ ଲୋକେ ନିନ୍ଦା କରୁଥିଲେ । କୂଅର ଶୁଦ୍ଧି ପାଇଁ ଠାକୁରାଣୀ ମାର୍ଜନା ଲାଗି ଟଙ୍କା ମାଗିଥିଲେ । କିନ୍ତୁ ସିଏ ମଧ ମନା କରିଦେଲା ଟଙ୍କା ଦେବା ପାଇଁ । ଔପନ୍ୟାସିକ ଏଠି ଅନ୍ଧ ଭାବରେ ଗ୍ରହଣ କରୁଥିବା ରୀତିନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ତାକୁ ସଜାଡ଼ିବାର ରାସ୍ତା ଏହି ଚରିତ୍ରମାନଙ୍କ ମାଧ୍ୟମରେ ଦେଖାଇଛନ୍ତି । ପ୍ରକୃତରେ ଯେଉଁ ସମାଜରେ ସାମାଜିକ ସଚେତନତା ଯେତିକି ଅଧିକ, ସେହି ସମାଜ ସେତିକି ପ୍ରଗତିଶୀଳ । ଏଭଳି କୁସଂସ୍କାର ବିଲୋପ ସାଧନ ପାଇଁ ବ୍ୟକ୍ତିଗତ ହେଉ ବା ସାମୂହିକ ହେଉ ଉଦ୍ୟମ ହେବା ଜରୁରୀ।

ସମାଜରେ ଅବ୍ୟବସ୍ଥା ଅତି ମାତ୍ରାରେ ଦୃଷ୍ଟିଗୋଚର । ଔପନ୍ୟାସିକ ପାଳ ଏସବୁ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ ମଧ କରିଛନ୍ତି । 'ଆକ୍ରାନ୍ତ ୩/୪'ରେ ଗୋଟିଏ କଲେଜର ଏମିତି ଅବ୍ୟବସ୍ଥାଗତ ସମସ୍ୟା କଥା କୁହାଯାଇଛି । ଛାତ୍ର ଆନ୍ଦୋଳନ, ଅଧ୍ୟାପକ ଅଶାନ୍ତି, ଲାଇବ୍ରେରୀରେ ପୁସ୍ତକ ଅଭାବ, ଅଧ୍ୟାପକମାନେ କ୍ଲାସ୍ ନେଉ ନାହାଁନ୍ତି, ଅଧ୍ୟାପକ ମରଡ଼ି ପରି ବିଭିନ୍ନ ସମସ୍ୟା ଦେଖାଦେଇଛି, ଯାହାଦ୍ୱାରା ଚାପ ପଡ଼ିଛି ଅଧ୍ୟକ୍ଷଙ୍କ ଉପରେ । ପୁଣି ଅନ୍ୟାନ୍ୟ ବିଷୟକୁ କେନ୍ଦ୍ର କରି ସରକାରଙ୍କୁ ରିପୋର୍ଟ ଦେବା ଆହୁରି ତାଙ୍କ ଉପରେ ବୋଝ ହୋଇଯାଇଛି । ଏଭଳି ସମସ୍ୟା ଭିତରେ କଲେଜ ଚାଲିଛି ଗୋଟିଏ ଧଡ଼ ଧଡ଼ ଗାଡ଼ି ପରି । ଏହାର ମୁକାବିଲା ପାଇଁ ଅଧ୍ୟକ୍ଷ ପରିଶେଷରେ ନିଜର ବକ୍ତବ୍ୟ ରଖିଲେ- "ଏ କ୍ଷେତ୍ର ଏକ ଭୟାବହ ଆକ୍ରାନ୍ତର କ୍ଷେତ୍ର । ଆମେ ସମସ୍ତେ ଆକ୍ରାନ୍ତ, ରୁଗ୍ଣ । ମୁଁ ବି । ହୁଏତ ଅଧିକ ଆକ୍ରାନ୍ତ । ଏ କ୍ଷେତ୍ରରୁ ରକ୍ଷା ପାଇଁବା ପାଇଁ ଏ ବ୍ୟବସ୍ଥା ଏ ଧାରାକୁ ଭାଙ୍ଗି ଦେବାକୁ ପଡ଼ିବ । ପ୍ୟାଚ୍ ପକେଇବାର ତତ୍ତ୍ୱ ଅଧିକ ରୁଗଣ୍ କରିବ ଆମକୁ । ଆଗାମୀ ପୁରୁଷ ପାଇଁ ତା' ବି ସୃଷ୍ଟି କରିବ ଅଧିକ ବିଡ଼ମ୍ବନା । ଗୋଟିଏ ରୁଗ୍ଣ ବ୍ୟବସ୍ଥାକୁ ଆଗାମୀ ପୁରୁଷ ହାତରେ ଟେକି ପାରିବା ନାହିଁ ।" (୮) ଏଠି ଔପନ୍ୟାସିକ ଅବ୍ୟବସ୍ଥାରୁ ସୁବ୍ୟବସ୍ଥା ପାଇଁ ସମସ୍ତଙ୍କୁ ଲଢିବାକୁ ଆହ୍ୱାନ ଦେଇଛନ୍ତି । କାହିଁକି ନା ଏ ଅବ୍ୟବସ୍ଥା ସମସ୍ତଙ୍କ ପାଇଁ ହେଉଛି ଓ ସମସ୍ତଙ୍କ ଦ୍ୱାରା ହିଁ ସମସ୍ୟାର ସମାଧାନ କରାଯାଇପାରିବ । ସେହିପରି 'ଯାତ୍ରା ଡଟ୍ କମ୍'ରେ ମଧ ଔପନ୍ୟାସିକ ସମାଜର ଅବ୍ୟବସ୍ଥା ପ୍ରତି ନିର୍ଭୀକ ଭାବରେ ଦର୍ଶାଇଛନ୍ତି । ଏଠି ଇଲେକ୍ଟ୍ରି, ଟେଲିଫୋନର ଅବ୍ୟବସ୍ଥାଠୁ ଆରମ୍ଭ କରି ପୋଲିସ୍, ହସ୍ପିଟାଲ୍ର ଅବ୍ୟବସ୍ଥା ପର୍ଯ୍ୟନ୍ତ ପ୍ରଦର୍ଶିତ । ପୋଲିସର କାର୍ଯ୍ୟ ସାହାଯ୍ୟ ପରିବର୍ତ୍ତେ ହୋଇଛି କେବଳ ତଦାରଖ, ଯାହା ମଣିଷକୁ କଟା ଘା'ରେ ଚୂନ ଦେବା ଭଳି ମନେହୁଏ । ଯେମିତି ଆକ୍ସିଡେଣ୍ଟରେ ପୀଡ଼ିତ ଥିବା ମହେଶକୁ ନେଇ ହସ୍ପିଟାଲର କେଉଁ ଏକ ଅନ୍ଧାରୁଆ କୋଣରେ ଫୋପାଡ଼ି ଦେବା ଅମାନବିକତା । ଏଭଳି ସମାଜରେ ମଣିଷ ବଞ୍ଚିବା ପାଇଁ ଅସୁରକ୍ଷିତ ମନେକରେ । ଆଉ ହସ୍ପିଟାଲ ତ ଗୋଟାଏ ଭୂତକୋଠି । ଯେଉଁଠି ଅବ୍ୟବସ୍ଥା ହିଁ ବେଶୀ ଦୃଷ୍ଟିଗୋଚର । ମୃତ୍ୟୁର ପାଖାପାଖି ହେଉଥିବା ମହେଶ ପରି ଅସଂଖ୍ୟ ମଣିଷକୁ ଟ୍ରିଟ୍ମେଣ୍ଟ ବଦଳରେ ଦିଆଯାଉଛି କେବଳ ଯନ୍ତ୍ରଣା । ନୀରୁ ପରି କେତେ ଯେ ଗର୍ଭବତୀ ସ୍ତ୍ରୀ ବିଭାଗୀୟ ଅବହେଳା ପାଇଁ ଜୀବନ ଯନ୍ତ୍ରଣାରେ କାଳାତିପାତ କରୁଛନ୍ତି ତା'ର ଇୟତ୍ତା ନାହିଁ । ଡାକ୍ତର କାହାରି କଥା ଶୁଣୁ ନାହିଁ, କେବଳ ମିଥ୍ୟା ପ୍ରତିଶ୍ରୁତି ଆଞ୍ଜୁଳାଏ ଦେଉଛି । ସିଏ ଚାହୁଁନି ସେବା କରିବାକୁ, ଚାହୁଁଛି ଟଙ୍କା । ସେଥିପାଇଁ ସରକାରୀ ହସ୍ପିଟାଲରେ ନୁହେଁ, ନର୍ସିଂହୋମ୍ରେ ରୋଗୀ ଦେଖା ହେବ। ଆଜିର ସମାଜ ମଣିଷ ରକ୍ଷକ ନହୋଇ ଭକ୍ଷକ ସାଜିଛି । ଏଠି ଯାହାର ଟଙ୍କା ଅଛି ସିଏ ଜୀବନ ବଞ୍ଚିବ ସମ୍ମାନର ସହିତ ଏବଂ ଗରିବ ତଳିତଳାନ୍ତ ହୋଇ ଏକ ନିର୍ଯାତିତ ଜୀବନ ବଞ୍ଚିବ । ଏଭଳି ସମସ୍ୟାଗୁଡ଼ିକ ଔପନ୍ୟାସିକ ପାଳଙ୍କ ଚରିତ୍ରଗୁଡ଼ିକ ସାମ୍ନା କରିଛନ୍ତି ।

ସମ୍ପ୍ରତି ଗ୍ରାମ୍ୟ ସମାଜ ବଦଳିଯାଇଛି ବିଭିନ୍ନ କାରଣରୁ। ସହରୀ ସଭ୍ୟତା, ଆଧୁନିକ ଶିକ୍ଷା, ପାଶ୍ଚାତ୍ୟ ସଂସ୍କୃତି ଆଦିର ପ୍ରଭାବରେ ଜୀବନଧାରଣର ପରିବର୍ତ୍ତନ ଘଟିଛି । ଗାଁକୁ ଯେତେବେଳେ ଏସବୁ ଧକ୍ଷେଇ ପଶିଛି ଗାଁର ଅବସ୍ଥା ହୋଇପଡ଼ିଛି ଶୋଚନୀୟ । ପୂର୍ବରୁ ଯେଉଁ ସୁନ୍ଦର

ଗାଁଟିଏ ଥିଲା ତାହା ଏବେ ଭିନ୍ନ ମୋଡ଼ ନେଇଛି । ରାଜନୀତି ପଶି ଗାଁକୁ ଭାଗ ଭାଗ କରିଦେଇଛି । ବିବର୍ଣ୍ଣ ହୋଇଯାଇଛି ଯେମିତି ସୁସ୍ଥ ଗାଁର ଚିତ୍ରପଟ୍ଟ । 'ଦୁର୍ଗ ପତନର ବେଳ'ରେ ସୁମନପୁର ଗାଁରେ ରାଜନୀତି ପଶି ଗାଁଟା ଭାଗ ଭାଗ ହୋଇଯାଇଛି । ସରକାରଙ୍କ ମିଥ୍ୟା ପ୍ରତିଶ୍ରୁତି ଜନସାଧାରଣଙ୍କ ମନରେ ଭରିଦେଇଛି ଅବିଶ୍ୱାସ । ପରସ୍ପର ମଧ୍ୟରେ କଳି କଜିଆରେ ଲିପ୍ତ ରହି ଦଳର ଛତ୍ର ତଳେ ନ୍ୟାୟ ଅନ୍ୟାୟ ବିଚାର ହୋଇଛି । ସ୍ୱାର୍ଥ ସମ୍ବଳିତ ଜୀବନ ଯୋଗୁଁ ଗ୍ରାମ୍ୟ ସମାଜର ଅପମୃତ୍ୟୁ ଘଟିଛି । ସେହିପରି 'ମାମୁଁଘର ଚଉଁରୀ'ରେ ରାଜୁ ବହୁ ବର୍ଷର ବ୍ୟବଧାନ ପରେ ମାମୁଁ ଗାଁକୁ ଯାଇ ଦେଖିବାକୁ ପାଇଛି ମାମୁଁଘରର ଶୋଚନୀୟ ଅବସ୍ଥା, ବଦଳି ଯାଇଥିବା ଗାଁର ଅବସ୍ଥା । 'ଗାନ୍ଧି ଛକରୁ ଟିକିଏ ଆଗକୁ' ଗାନ୍ଧିଛକରେ ଏବେ ହତ୍ୟା, ଲୁଣ୍ଠନ ଭଳି ଜଘନ୍ୟ କାର୍ଯ୍ୟ ହେଉଛି । ଏହି ଛକରୁ ଦିନେ ଗାନ୍ଧିଜୀ ସତ୍ୟାଗ୍ରହ ଆରମ୍ଭ କରିଥିଲେ । ଅହିଂସା ମାର୍ଗକୁ ନେଇ ଅଂସଖ୍ୟ ଲୋକ ବାହାରିପଡ଼ି ତାଙ୍କରି ପଥ ଅନୁସରଣ କରିଥିଲେ । କିନ୍ତୁ ଆଜି ସେଇ ଛକ ଗୋଟିଏ ହିଂସାର କେନ୍ଦ୍ରବିନ୍ଦୁ । ଏଠି ସେକାଳ ଏକାଳ ଭିତରେ ତଫାତ୍ ଦର୍ଶାଯାଇଛି ।

ବାସ୍ତବରେ ଦେଖିବାକୁ ଗଲେ କଳୁଷିତ ରାଜନୀତି, ରକ୍ଷଣଶୀଳ ଦୃଷ୍ଟିକୋଣ, ପାରଲୌକିକ ବିଶ୍ୱାସ, ଜାତିଗତ ଓ ଧର୍ମଗତ ଅନମନୀୟତା ଆଦି ଯୋଗୁଁ ସମାଜରେ ଦେଖାଦେଇଛି ନାନା ସମସ୍ୟା । ଔପନ୍ୟାସିକ ପାଳଙ୍କ ଉପନ୍ୟାସରେ ଏସବୁ ବାସ୍ତବତାକୁ ଭିତ୍ତି କରି ବିଭିନ୍ନ ଚରିତ୍ର - ଘଟଣାଦି ମାଧ୍ୟମରେ ପ୍ରକାଶିତ । ଏଇଥିପାଇଁ ଯେ କଳା ପାଇଁ କଳା ନୁହେଁ, ଜୀବନ ପାଇଁ କଳା । ଯାହା ସାମାଜିକ ବାସ୍ତବତାର ପ୍ରଧାନ ଆଦର୍ଶ ।

**ସହାୟକ ଗ୍ରନ୍ଥସୂଚୀ**

୧. ପରିଡ଼ା, ଡ. ଆଶୁତୋଷ : ସାହିତ୍ୟରେ ସାମାଜିକ ବାସ୍ତବତା ଓ ବାସ୍ତବବାଦ, ଦ୍ର. ଶତପଥୀ, ଡକ୍ଟର ନଟବର (ସଂପା), 'ସାହିତ୍ୟ ଓ ବାସ୍ତବବାଦ', ଏସ୍‌ବି ପବ୍ଲିକେଶନ୍ସ, ବିନୋଦବିହାରୀ, କଟକ, ପ୍ରଥମ ସଂସ୍କରଣ -୧୯୯୨, ପୃ. ୫୫ ।

୨. ପରିଡ଼ା, ଡ. ଆଶୁତୋଷ : ସାହିତ୍ୟରେ ସାମାଜିକ ବାସ୍ତବତା ଓ ବାସ୍ତବବାଦ, ଦ୍ର. ଶତପଥୀ, ଡକ୍ଟର ନଟବର (ସଂପା), 'ସାହିତ୍ୟ ଓ ବାସ୍ତବବାଦ', ଏସ୍‌ବି ପବ୍ଲିକେଶନ୍ସ, ବିନୋଦବିହାରୀ, କଟକ, ପ୍ରଥମ ସଂସ୍କରଣ -୧୯୯୨, ପୃ. ୫୩ ।

୩. ପଣ୍ଡା, ଡକ୍ଟର ନୃସିଂହଚରଣ - 'ଓଡ଼ିଆ ଉପନ୍ୟାସରେ ବାସ୍ତବବାଦ', ଦ୍ର. ଶତପଥୀ, ଡକ୍ଟର ନଟବର (ସଂପା), ସାହିତ୍ୟ ଓ ବାସ୍ତବବାଦ, ଏସ୍‌ବି ପବ୍ଲିକେଶନ୍ସ, ବିନୋଦ ବିହାରୀ, କଟକ, ପ୍ରଥମ ସଂସ୍କରଣ-୧୯୯୨, ପୃ. ୪୮ ।

୪. ପାଳ, ପଦ୍ମଜ- 'ଆମ ସମୟର ଦୁଃଖ', ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡ୍, ନୂଆପଲ୍ଲୀ, ଭୁବନେଶ୍ୱର, ପ୍ରଥମ ପ୍ରକାଶ - ଅକ୍ଟୋବର, ୧୯୮୯, ପୃ. ୫୯ ।

୫. ପାଳ, ପଦ୍ମଜ- 'ମାମୁଁଘର ଚଉଁରୀ', ଉତ୍କଳିକା ପ୍ରକାଶନୀ, କଟକ, ପ୍ରକାଶକାଳ -୨୦୦୯, ପୃ. ୪୮ ।

୬. ସାହୁ, ଧନେଶ୍ୱର - 'ଧର୍ମ, ଦର୍ଶନ ଓ ସମାଜ', ଜେନିଥ୍ ପବ୍ଲିକେଶନ୍ସ, ଭଦ୍ରକ, ପ୍ରଥମ ପ୍ରକାଶ - ଜୁନ୍ -୨୦୦୨, ପୃ. ୧୫୨।

୭. ପାଳ, ପଦ୍ମଜ, 'ପାପ ପରି ନିଜର', ଅଗ୍ରଦୂତ, ବାଙ୍କାବାଜର, କଟକ, ପ୍ରଥମ ପ୍ରକାଶ - ୧୯୯୫, ପୃ. ୪୨।

୮. ପାଳ, ପଦ୍ମଜ, 'ଆକ୍ରାନ୍ତ ୩/୪', ଆକାଂକ୍ଷା ପ୍ରକାଶନ, ଭଦ୍ରକ, ପ୍ରଥମ ପ୍ରକାଶ - ଜୁନ୍ ୨୦୦୭, ପୃ. ୯୪।